# ଶ୍ରୀପଞ୍ଚମୀ ବୋଲି ।

ଶ୍ରୀ ଗୁପବଦ୍ୱାସୀ ଦାଶଙ୍କ

ଦ୍ୱାରା

ପ୍ରକାଶିତ ।

ପ୍ରଥମ ସଂସ୍କରଣ ।

କଟକ, ଚନ୍ଦ୍ରୋଦୟ ଯନ୍ତ୍ରାଳୟରେ ମୁଦ୍ରିତ ।

Printed by H. K. Das,
Chandrodaya Press,
CUTTACK.
1925.

ମୂଲ୍ୟ ୦ ୧୬ ଦୁଇପଇସା ମାତ୍ର ।

# ଶ୍ରୀପଞ୍ଚମୀବୋଲି ।

## ସରସ୍ୱତୀଙ୍କ ସ୍ତୁତି ।

( "କସ୍ତ-ନସ୍ତନ ଜଟୋଳେ ଶୋଭେ ଚନ୍ଦ୍ରା" ବୃତ୍ତରେ । )

କରୁଣାମୟି ଗୋ ମାତଃ ବୀଣାପାଣି । ଶରଣରକ୍ଷିଣୀ ବ୍ରହ୍ମପୁତ୍ରୀ ବାଣୀ । ନିତ୍ୟ ତୋ ଚରଣେ ରହୁ ମୋ ମନତି । ନମସ୍ତେ ନମସ୍ତେ ଜୟ ସରସ୍ୱତୀ । ୧ । ଶୁକ୍ଳ କାନ୍ତିଧାରିଣି ଜ୍ୟୋତିର୍ମୟୀ । ତୋର ଅର୍ଚ୍ଚିବେ ମୋକ୍ଷ ହୁଏ ସ୍ଥାୟୀ । ଅଜ୍ଞାନ ତମସ ନାଶେ ତୋ ବିଭୂତି । ନମସ୍ତେ ନମସ୍ତେ ଜୟ ସରସ୍ୱତୀ । ୨ । ବସନ୍ତ ପଞ୍ଚମୀରେ ଯେ ତୋ ପଦ୍ମରେ । କୁନ୍ଦଦଳରେ ପୂଜେ ଭକ୍ତି ପ୍ରୀତିଭରେ । ବିଦ୍ୟାବନ୍ତ ହୁଏ ସେହୁ ବୁଦ୍ଧିମତି । ନମସ୍ତେ ନମସ୍ତେ ଜୟ ସରସ୍ୱତୀ । ୩ । ସତ୍ୟାସତ୍ୟ ତୋଠାରେ ଯେତେ ପଦାର୍ଥରେ । ପ୍ରଧାନ ବଡ଼ତା ହୁଏ ସେ ସଭାରେ । ତୋର ନାମ ଅଟେ ଅମୂଲ୍ୟ ସମ୍ପତ୍ତି । ନମସ୍ତେ ନମସ୍ତେ ଜୟ ସରସ୍ୱତୀ । ୪ । ତୋ ପାଦ ସେବି ନାରଦ ମହର୍ଷି । ସ୍ନେହଭରେ କେତେ ତାଙ୍କୁ ପରଶଂସି । ପୁକରୁ ବୀଣା ଦେଲୁ ଗୋ ମା ସୁରତି । ନମସ୍ତେ ନମସ୍ତେ ଜୟ ସରସ୍ୱତୀ । ୫ । ତୋହର ଦୟାବଳେ ସ୍ୱର୍ଗ ଅପସରା । ଗାନ୍ଧର୍ବ ବିଦ୍ୟାରେ ଇନ୍ଦ୍ରେ ତୋଷ କର । ଭୋଗୁଅଛନ୍ତି ସେ ଅଚଳ ବିଭୂତି । ନମସ୍ତେ ନମସ୍ତେ ଜୟ ସରସ୍ୱତୀ । ୬ । ତୋହର ପ୍ରସାଦରୁ ବାଲ୍ମୀକି ମୁନି । କଲେ ଶ୍ଳୋକେ ରାମାୟଣ ଯେ ବଖାଣି । ପାଠ କରି ଜନେ ଲଭନ୍ତି ସୁମତି । ନମସ୍ତେ ନମସ୍ତେ ଜୟ ସରସ୍ୱତୀ । ୭ । ତୋହର ପାଦପଦ୍ମେ ଧ୍ୟାନ କରି ବ୍ୟାସ । ପୁରାଣ ଲେଖିଗଲେ ସେ ଅଷ୍ଟାଦଶ । ଅବର ବେଦକୁ ବିଭାଗ କଲେ ଯତି । ନମସ୍ତେ ନମସ୍ତେ ଜୟ ସରସ୍ୱତୀ । ୮ । ପାତକ ଜନ୍ମସାରେ ମୂର୍ଖ କାଳିଦାସ । ଥିଲେ ତୋହର ବରେ...

ଲବ୍ଧ ପୂର୍ଣ୍ଣ ଯଶ । ମହାଜନ ବୋଲି ଲଭିଅଛ ଖ୍ୟାତି । ନମସ୍ତେ
ନମସ୍ତେ ଜମ୍ବୁ ସରସ୍ୱତୀ । ୯ । ପୁଣି ଝଙ୍କଡ଼ ନଗରେ ତୁ ରହିଲୁ ।
ସେଠାରେ ଶାରଳା ନାମେ ଖ୍ୟାତ ହେଲୁ । ଶାରଳାଦାସକୁ ଦେଲୁ
କବିଶକ୍ତି । ନମସ୍ତେ ନମସ୍ତେ ଜମ୍ବୁ ସରସ୍ୱତୀ । ୧୦ । ତୋର ପଦଦ୍ୱନ୍ଦ୍ୱେ
ସଦା କରି ଆଶ । ବସିଛି ମୁଁ ମାତଃ ଯାଉ ମୂର୍ଖ ଦୋଷ । କୁମତି
ହରଣି ଦିଅ ମା ସୁମତି । ନମସ୍ତେ ନମସ୍ତେ ଜମ୍ବୁ ସରସ୍ୱତୀ । ୧୧ ।

---

ବନ୍ଦଇ ହରି ଦେବ ମୁରାରି ଲକ୍ଷ୍ମୀଦେବୀଙ୍କର କାନ୍ତ । ଲଭନ୍ତି ତାଙ୍କ
ଧ୍ୟାନରୁ କୁମର ସେ ପ୍ରଭୁ ଦେବ ଅନନ୍ତ । ୧ । ବାରମାସ ମଧ୍ୟେ ଅଟଇ
ସାର ମାଘ ସ୍ନାନକୁ ଯେ ହେବେ ବାହାର । ୨ । ମାଘ ସ୍ନାନକୁ ଯେ
ବାହାର ହୋଇ । ବସନ୍ତପଞ୍ଚମୀ ନାମ ବୋଲାଇ । ୩ । ଏହି ପଞ୍ଚମୀ ।
ଯେ ଅଟଇ ଭଲ । ଅନ୍ୟ ପଞ୍ଚମୀ ନୁହେଁ ସମତୁଲ । ୪ । ପିଲାଙ୍କୁ
ଲେଖାଇ ବୁଲି ସେ ଯାନ୍ତି । ଶ୍ରୀଫଳ ପୁସ୍ତକ ହସ୍ତେ ଧରନ୍ତି । ୫ ।
ମୋଦକ ମୋଡ଼ଅ କଣ୍ଠେ ଫୁଲମାଳା । ଓଡ଼ିଆ ଶିଷ୍ୟଙ୍କର ଉତ୍ସବ ଲୀଳା । ୬ ।
ଯାହାକୁ ଅଛଇ ଶେଷ କଳା ଯେ ଛୁଆ । ପଢ଼ ହେ ଚଟେ ହୋଇ ଯୋଡ଼ା
ଯୋଡ଼ା । ୭ । ପିଲା ଏ ସବୁ ବୋଇଲେ ଅମ୍ଭର । ଗୁରୁଙ୍କୁ ନିଅ ଇଷ୍ଟ
ବନ୍ଧୁଘର । ୮ । ଇଷ୍ଟ ବନ୍ଧୁଘର ମାଗିଣ ଯାଉଁ । ଯାହା ପାଉଁ ତାହା
ଗୁରୁଙ୍କୁ ଦେଉଁ । ୯ । ଗୁରୁଙ୍କ ନିମନ୍ତେ ଅଇଲୁଁ ଅମ୍ଭେ । ଲୋକେ କୋପ
ହୋଇ ନ ଖେଳ ତୁମ୍ଭେ । ୧୦ । ତୁମ୍ଭେ ଯେ ଅମ୍ଭର ବନ୍ଧୁ ସୋଦର ।
ତେଣୁ ଯେ ଆସିଲୁଁ ତୁମ୍ଭର ଘର । ୧୧ । ଅଦିଅ ବଚନ ପାଶ ନ
ଯାଉଁ । ଘରକୁ ଗଲେ ପଇସା ପାଉଁ । ୧୨ । ଘର ଲୋକଙ୍କୁ ବରୁ
କହୁ ଥୋଉ । ମନରେ ଆନ ନ ଧରିବ କାହୁଁ । ୧୩ । ଟଙ୍କା ସୁନା ଲୁଗା
ଧାନ ଚାଉଳ ଯାହା ହେବ ତାହା ଅଣ । ଆଣ ନ ହେଲେ ବାହୁଡ଼ି
ଗଲେ ପଶ୍ଚାତେ ଯାଇବ ଲାଜ । ୧୪ । ଯାଉଁ ଛୋଡ଼ି ଅମ୍ଭେ ନୋହୁଁ
ଛାଡ଼ିବ । ଯାହା ହେବ ତାହା ଦେଖିବେ ଲୋକ । ୧୫ । ବରଷକେ

ଏରେ ଅମ୍ଭ ମାଟ୍ଟିଣି । ଭକ୍ତ ଭୁଅଇଲେ ଶାରଙ୍ଗପାଣି । ୧୭ । ଶ୍ରୀ ନୀଳଗିରି ଶିଖରେ ହରି, ତୁମ୍ଭଙ୍କୁ ବାନ୍ଧୁ ବର । ତୁମ୍ଭେ ଯେ ଅମ୍ଭଙ୍କ ପ୍ରସନ୍ନ ହେଲେ, ଓଣ୍ଟା ଲୋଟେ ଯିବୁଁ ଘର । ୧୬ । ପଢ଼ି ପଢ଼ି କର ଲାଗିଲୁ ଶୋକ । ତୁମ୍ଭେ କାନ ଜାଣ ପଢ଼ିବା ଦୁଃଖ । ୧୮ । ଅମ୍ଭେ ନାସ୍ତି ବେନି ବଚନ କହ । ବେଗେ ଚଳିଯିବୁଁ ମେଳଣି ଦେହ । ୧୯ । ମେଳଣେ ଦେଖିଲେ ଯିବୁଁ ଅମ୍ଭ ବାପ । ଭାବେ ଭଣିଲେ ବଳରାମ ଦାସ

---

ବନ୍ଦଇ ନିତ୍ୟ ଶ୍ରୀ ଜଗନ୍ନାଥ ଲକ୍ଷ୍ମୀ-ସରସ୍ୱତୀ-ପଦ । ଅଭ୍ୟୁଦାର୍ଥ କଟକେ ବନ୍ଦି ନୀଳାଚଳ ଯାଇ ସ୍ନେହ । ୧ । ମଥୁରାପୁର ଶ୍ରୀ ଦାମୋଦର ବସୁଦେବ ଘରେ ଜନ୍ମ । ଦନ ଶୋଭ ଖଡ଼ି ଛୁଆଇ ଗୁରୁ ହେଲେ ଶାନ୍ତନୁ । ୨ । ବକ୍ରତୁଣ୍ଡକାଳେ ବାଳକମାନେ ପଢ଼ନ୍ତି ଜଗତସ୍ୱାମୀ । ଶୁକ୍ଳ ଦିନରେ ମଘମାସରେ ପଢ଼ିଲେ ଶିଶୁ ସ୍ୱାମୀ । ୩ । ନାନ୍ଦ ସମାନ ବିସ୍ତର ଦାନ ଗୁରୁ ଶିଷ୍ୟଙ୍କର ଏହି । ଶ୍ରୀସରସ୍ୱତୀ ପୂଜା କରନ୍ତି ଶ୍ରୀଫଳେ ପିତୁଳା ଲିହ । ୪ । ଗନ୍ଧ ଚନ୍ଦନ ଧୂପ ଦ୍ୟାନ ଦେଲେ ଦେବୀ ତୋଷ ହୋନ୍ତି । ଶ୍ରୀଫଳ ପୋଥି ହସ୍ତେ ଦେଇନ୍ତି ଅନେକ ସ୍ତୁତି ପଢ଼ନ୍ତି । ୫ । ପୂଜା ବହାଇ ଜଳରେ ନେଇ ପକାଇ ଦେଅନ୍ତେ ଫଳ । ସକଳ ବାଳେ ଲେଉଟିଲେ କଳେ ପାଇଲେ ଦେବୀଙ୍କ ପାନ ॥ ବସୁଦେବର ଗହଲ ଘରର ଶାସ୍ତ୍ରର ଶ୍ରୀଫଳ ଯେନ । ଟିଅ ମାନ୍ତ ଦେଖି ଉତ୍ପନ୍ନ ହେଲେ ବହୁ ବସ୍ତ୍ର ଅଣି ॥ ତହୁଁ କୁମ୍ଭରେ ଯେ ଯାଦବପୁରେ ଗଲେ ସଙ୍ଗ ହୋଇବ କୁ । ମାନ୍ତ ବସନ୍ତ ଭକଳ ନେଇ ପିନ୍ଧାଇଲେ ବାଛି ମନକୁ ॥ । କର୍ଣ୍ଣେ ଡଉଡ଼ିକା ଦନ୍ତରତ୍ନେ ବ ପଗଡ଼ି ପାଟ ବେମାଡ଼ିଥି । ହସ୍ତରେ ବଳ କଣ୍ଠରେ ମାଳା ପାଦୁକର ବସ୍ତ୍ର ଦେଇ । ୯ । ଶିରରେ ଗନ୍ଧ ଚନ୍ଦନ ଶୋଭା ଲଲାଟେ ଚନ୍ଦ୍ର ଚନ୍ଦନ । ପୁଷ୍ପେଣ ହେଲେ ବଦନ ତୁଲେ ବାହାର ସବୁ ନନ୍ଦନ । ଗୁରୁ ସଙ୍ଗତେ ଶିଷ୍ୟ ସହିତେ ଶ୍ରୀ ଭ ବାହାର ହୋଇଲେ । ପଢ଼ନ୍ତି ଗ୍ରନ୍ଥ ଖେଳ ପାଠ ଭଷ୍ଟ ତନ୍ତୁପର ଗଲେ । ୧୧ । ହୋଇ ପ୍ରବେଶ ବଜ୍ରୀ

ପ୍ରାଣ ଶୋଳକ ପଢ଼ନ୍ତି ଅଟେ । ବସ୍ତ୍ର ପୂରଣ କଲେ ବଖାଣ ସୁସ୍ୱର
ଲଳିତ ସ୍ୱରେ । ୧୨ । ଚଢ଼ିଣ ପାଠ ହୋଇଣ ତୁଷ୍ଟ ବୋଲନ୍ତି ଶ୍ରୀ
ଦାମୋଦର । ତୁମ୍ଭେ ଅମ୍ଭର ବନ୍ଧୁ ସୋଦର ଅଇଲ ତୁମ୍ଭର ପୁର ॥
ବରଷକରେ ମାଘ ମାସରେ ପଢ଼ିଲ ଅମ୍ଭ ମାଗୁଣି ; ସେହି ଜନମରେ
ଅଇଲୁଁ ଏବେ ମନେ ଥାଅ ତୁମ୍ଭେ ଜାଣି । ୧୪ । ବଡ଼ା ବ୍ରାହ୍ମଣ ଇଷ୍ଟ
କରଣ ଖଣ୍ଡାଏତ ଚତୁରଘର । ବନ୍ଧୁ ଅମ୍ଭର ପ୍ରିୟ ସୋଦର ଜାଣନ୍ତି
ଏଥି ବେଉର । ୧୫ । ଜାଣତ ତୁମ୍ଭେ କେମନ୍ତ ଅମ୍ଭେ କହିବା କାପ
ଅଧିକ । ତୁମ୍ଭେ ମହତ ଜାଣ ସମସ୍ତ ଅଟ ଧାର୍ମିକ ବିବେକ ॥ ଟଙ୍କା କଉଡ଼ି
ଦ୍ରବ୍ୟ ପାଟେଶ୍ୱର ସୁନା ରୂପା ଯାହା ଦେଇ । ସେ ଯେତେକ ପାଣ ଦେବ
ତୁଷ୍ଟ ମନରେ ସାନନ୍ଦ ହୋଇ ॥ ଅଇଲୁଁ ଦୂର ବେଳ ଉଚ୍ଛୁର ଅମ୍ଭଙ୍କୁ
ମେଲାଣି ଦେବ । ଦେବ ନ ଦେବ ସେହି କହିବ ତୁମ୍ଭ କଥା ରହିଥାଉ ।
ବଇତ ଦୂର ବେଳ ଉଚ୍ଛୁର ଅମ୍ଭଙ୍କୁ ଲାଗିଲା ଶୋକ । ମେଲାଣି ଦେବ
ଗ୍ରାମ ପଢ଼ିବ ଜାଣନ୍ତି ଚଢ଼ିବା ଦୁଃଖ ॥ ମଉନ ହୋଇ ମୁଖ ଶୁଖାଇ
ପ୍ରିୟ ପ୍ରୀତି ବୋଲି ସିନା । ତାହାଙ୍କୁ ତୁମ୍ଭେ ନ ଭଲ ଦେବେ ନ କର
କଥା ରହଣା । ୨୦ । ପାଷାଣ ଦଣ୍ଡା ବଡ଼ ନର୍ଦ୍ଦମା ହୋଇଲେ କି ଏ
ଫଳିବ । ଅଦନ ବସନ୍ତେ କୋକିଳର କଣ୍ଠ କାହୁଁ ସୁସ୍ୱର ହୋଇବ ।
ସକଳ ତରୁ ପଲ୍ଲବେ ଗରୁ ବସନ୍ତକାଳ ଦେଖିଣ । ଏହି କାଳରେ
ବେଣୁ ବୃକ୍ଷର ପତ୍ର ନ ରହଇ ଜାଣ । ୨୨ । ଲୋପନ ପ୍ରାୟେ ପରଜେ
ହୁଏ ଖାସା ଏ ପାଇଲେ ଯିବୁଁ । ଟଙ୍କା ଦକ୍ଷିଣା ପାଇ ଝଲଣା ହୋଇ
ଶୁଭ ମନାସିବୁଁ ॥ ଗୀତ ବଢ଼ିଲ ଦସ୍ତା ବଢ଼ିଲ ମେଲାଣି କର ବନ୍ଧନ ।
ଛାର ବନ୍ଧୁ ଭଣେ ଶ୍ରୀଗୁରୁ ଚରଣେ ପ୍ରବେଶ ଯେଣ୍ଡା ଭୁବନ । ୨୪ ।

---

ଜୟ ଜୟ ଲମ୍ବୋଦର ବିଘ୍ନେଶ୍ୱର । ଭକ୍ତଜନମାନଙ୍କ ଦୁଃଖ
ହର । ୧ । ଜୟ ପୁଣ୍ଡରୀକାକ୍ଷ ଚକ୍ରସ୍ତୁତ । ଶେଷଦେବାଦି ଯାକୁ କରନ୍ତି
ସ୍ତୁତି । ୨ । ମାଘ ଶୁକ୍ଳପକ୍ଷରେ ତରୁଣରେ । ପଞ୍ଚମୀରେ ଚତୁର୍ଥୀରେ

ଶୁକ୍ଳପକ୍ଷେ । ୩ । ହେଲ ମାଘ ଶୁକ୍ଳ ପଞ୍ଚମୀ ତିଥି । ଦେବୀ ସର-
ସ୍ୱତୀଙ୍କ ଜନମ ଏଥି । ୪ । ଏହା ଶୁଣି ଗୃହ ଅଙ୍କଟରେ ଗଲେ । ପିତା
ମାତାଙ୍କ ସମ୍ମୁଖରେ ଜଣାଇଲେ । ୫ । ଏମାନ ଯତନକରି ସଜାଡ଼ି ।
ଗୃହେ ରଖିଦେଲେ ଖାଟ ଧାଡ଼ି ଧାଡ଼ି । ୬ । ପୂର୍ଣ୍ଣପାତ୍ର ଲଡ଼ୁ ଦଧି
ରମ୍ଭାଫଳ । ଛେନା ଖଣ୍ଡୁଆ ଗୋଟିକା ନାଡ଼ିକେଳ । ୭। ଯେନ ଗୃହ-
ମାନେ ଅତି ଉଚ୍ଛାହରେ । ବେଶ ହୋଇଣ ମିଳିଲେ ପୂଜାଠାରେ ।୮।
ଧୂପ ଦୀପ ନଇବେଦ୍ୟ କ୍ରମ୍ବାଦ । ଉପକରଣ ସାମଗ୍ରୀ କଲେ ସିଦ୍ଧି ।୯।
ଟାଣ ନାଡ଼ିକେଳ ସେଥି ହସ୍ତେ ଘେନ । ଗୀତଶ୍ଳୋକ ପାଠକଲେ
ବେନ ବେନ । ୧୦ । ପିତା ମାତା ହରଷେ ମେଲାଣି କଲେ । ନିଜ
ଛିନ୍ନବନ୍ଧ ଘର ଯା ବୋଇଲେ । ୧୧ । ପିତା କହ ଛ ପୁ ବାରକୁ
କାର । ନ ଯିବାଟି ଅଦଆ ବନ୍ଧୁ ଘର । ୧୨ । ଏହି କାରଣ ଅଇଲୁଁ
ତୁମ୍ଭଘର । ଗଡ଼ ସଦେହ ବେଗେ ମେଲାଣି କର । ୧୩ । ଟଙ୍କା
ଯୁନା କଉଡ଼ି ଯେ ସୁବସନ । ଯାହା ଇଚ୍ଛା ହୁଏ କର ପ୍ରଦାନ । ୧୪ ।
ତୁମ୍ଭେ ନ ଦେଲେ ଯେବେ ବାହୁଡ଼ି ନିବୁଁ । ପିତା ସତ୍ୟବଲେ
ଛପ କହିବୁଁ । ୧୫ । ପିତା ବୋଲିବେ ଯେଠାକୁ ଯାଇ ଗଲ । ସବୁ
ମର୍ଯ୍ୟାଦା ଅମ୍ଭର ବୁଡ଼ାଇଲ । ୧୬ । ହେଉ ନୋହୁ ବା ତୁମ୍ଭଙ୍କ
ପରଶଂସା । କେତେ ହୋଇବ ତୁମ୍ଭଙ୍କ କେକ ଯଶ । ୧୭ । ତୁମ୍ଭ ଆମ୍ଭର
କିଛୁ ନ ଥାନ୍ତା ଯେବେ । ତୁମ୍ଭଠାକୁ ଆସନ୍ତୁ କାହିଁକି ତେବେ ।୧୮।
ଯେଉଁଠାରେ ଥାଏ ବନ୍ଧୁ ପ୍ରିୟସ୍ୱ । ଠାବ କର ଯାଉଁ ଅମ୍ଭେ ସେହି
ଠାବ । ୧୯ । ଲେଖା ଭୂଷଣ ଦୁଷ୍ଟ ନାସ୍ତିକ ମୂର୍ଖ । ଯେତେ କହିଲେ
ନ ଯାଉଁ ତାଙ୍କ ପାଖ । ୨୦ । ଯେବେ ପାଇବେ ହୃଦ କାହିଁକି
ଯାଉଁ । କେଉଁଠାରେ କେତେ ସନ୍ତୁଷ୍ଟ ପାଉଁ । ୨୧ । ତୁମ୍ଭ ସବୁସ୍ୱେ
ନିନ୍ଦ ନ ଶୁଣିବେ ଜଣେ । ନୀତିବନ୍ତ ସତ୍ୟବାଦୀ ସାଧୁପଣେ । ୨୨ ।
ନିର୍ଦ୍ଧନ କୃପଣ ହୋଇ କଥା ନାହିଁ । ଏହି ଗୁଣ ଶୁଣି ଅସିଅଛୁଁ ଧାଇଁ ।
ସର୍ବସ୍ଥଳୀ ଅଟ ତୁମ୍ଭେ ଜଣେ । ସନ୍ଦେହ ନାହିଁ ଏଥି ଦେଖେ

ପଟେ । ୧୪ । ଦାଣ୍ଡେ ଘର କରୁଅଛୁ ନୈବେଦ୍ୟକରେ । ଗଙ୍ଗାଜଳେ
ସ୍ନାନ କରାଏ ଏବେ କରେ । ୧୫ । ଚନ୍ଦନ ନ ଦେଲ ବୃକ୍ଷାଏ ଏ
ନ ଦ । ଗଙ୍ଗା ନ କହିଲ ମାଆ ଗୋଠ ଭବ ।୧୬। ଯାହା ଦେଖା ଇଚ୍ଛା
ଅଛୁ ଅଙ୍ଗ ଦଅ । ନ ଦେଲ କାଳିକା ଡେବୁଁ ଆଜ ଯାଅ । ୧୭। ଏହି
ଠାକୁରାଣୀ ଯାଉଛୁ ନେଇ ଜାଳ । ଯିବୁଁ ମେଲାଣି କରନ୍ତେ ଭବକାଳ ॥
କାହିଁପାଇଁ କରୁଅଛ ଏବେ ମଠ । କେତେ କହିବେ ପିତା ମାତା ମନ
କାଠ ।୧୮। ରକ୍ଷା ପଥେ ନ ଦେଖା ଅ ପଠେ । ବରଷକେ ଆଦିବାର
ପିତା ଅଛ ।୨୦। ବନ୍ଦାବନ୍ଦ କରୁଅଛୁ କାହିଁପାଇଁ । ମନେ କରୁଥିବ
ତା ନ ଦେବାପାଇଁ । ୨୧ । ଯେତେ କହନ୍ତି ଲୁଳଚେଷ୍ଟ ବାଣୀ ।
ଛିଳା ତେଲେ ଭାଜନା ଏହା ଶୁଣି ।୨୨। ଆଜ୍ଞ ଅଧିକ ଗୁଡ଼ାଏ କହି–
ବାର । ଭଲ ଲୋକଙ୍କର ନୁହେ ଏ ବେଭାର ।୨୩। ସରସ୍ୱତୀ ଦେବୀ
ମାତା ଦେବେ ବର । ପଞ୍ଚୋପଚାରେ ଅମ୍ଭଙ୍କୁ ମେଲାଣି କର ।୨୪। ଦୈତ୍ୟ
ବଂଶେ ଜନ୍ମ କାଳୁଟିଙ୍କଣନ୍ତ । ଏଥି ଅଦର କେବା ପକ୍ଷୀ ଅଛର ।୨୫।



ନମୋ ନମୋ ଦେବୀ ଜୟ ଦଇତ୍ୟଘ୍ନୀ । ପିତାମହସୃଷ୍ଟା ଜୟ ତ୍ରି
ଜଗତ୍ତ୍ରାଣା । ଶରଣାଗତବନ୍ଦନ ଶ୍ରୀପାଦଙ୍କ ସ୍ପର୍ଶ । ନମୋ ନମୋ ଦେଖ କର
ମା ହୃଦୟା ।୧। ଯେତେ ଦେବାସୁର ଜଗତ ଜନନ । ଜମ୍ବୁନଦ ଛନ୍ଦି ଶୋଭ
ଅଗ୍ନିମଣି । ଶ୍ୱେତ ଦୁକୂଳ କଟିରେ ବେଷ୍ଟନ । ନମୋ ନମୋ ଦେବୀ
ଜୟ କାଣାଦୃଷ୍ଟା ।୨। ଅଭୟବାହିନୀ କର ଚତୁଷ୍କଟା । ଜୟ ସନ୍ଧ୍ୟାମାୟୀ
ଚନ୍ଦ୍ର ଭଙ୍ଗବଠ । କଟେ ଶୈବବାନ ଶଙ୍ଖ ଧନୁର୍ବାଣ । ନମୋ ନମୋ
ଦେବୀ ତ୍ରି । ତୋ ରେ ।୩। କୃଷ୍ଣା ବାଣୀ ବାକ୍ୟ ନାମ ତୋ ଅଙ୍ଗନା ।
ଦେଖ ଧାରଣୀ ଜଟେ ତୋ ପୂଜନ । ଅଙ୍ଗେ ମଣ୍ଡିତ କର୍ପୂର ଚନ୍ଦ–
ନାଭ । ନମୋ ନମୋ ଦେବୀ ରକ୍ଷଣ ତୋହର ।୪। ବେଦ ଶାସ୍ତ୍ରେ
କୀର୍ତ୍ତି ତୋହର ପାଦ । ତୋମାଠି ମନନ ବର୍ଣ୍ଣନ ତୋହର ଶବ୍ଦ । ଶୋଭେ
ଜମ୍ବୁନଦ ହାର ଗୃହଚ୍ଛ । ନମୋ ନମୋ ଦେବୀ ହିପୁଲ ପୂଜନ ।୫।

ସେତକୁସୁମ ମଣ୍ଡିତ ଗୁରୁକେଶ । ଢାଳରେ ଭେଦନ୍ତି ହୃଅଇ ପାଣ୍ଡୁର ।
ଏକ ଶୁଣି ମୂକ ହେବ ହୋ ତେଜ । ନମୋ ନମୋ ଦେବ ହୋଇବ।
ସ୍ୱସନ୍ତ ॥ ମତେଷ୍ଟ ଉତ୍ପତ୍ତି ହେଉ କନ୍ଧାଚୁତ । ନଟରେ ଗତଳ ନାଶ ଅବନ୍ୟ
ଭୁ ପାପ । ଓଁ ମଂ କ୍ଷେ ସ୍ତୋଷ୍ଠ ନାମ ସତ୍ୱଶ୍ୱନ୍ତି । ନମୋ ନମୋ ଦେବ
ନମସ୍ତେ ଶ୍ୱରତ ।୭। ପାଦେ ଯାବକ ବଂଶକ କରେ ସ୍ତୁନ । ନାରଦ ଭୋ
ପାଦେ ନତ୍ୟ କରେ ଧ୍ୟାନ । ସେ ପାଦେ ମୋହର ହେଉ ସ୍ଥିର ମନ ।
ନମୋ ନମୋ ଦେବ ବର ଦେ ବନ୍ଦନ । ୮ ।

———

ଟଗ—ବେଶ୍ୱି ।

ବନ୍ଦଇ ଶ୍ରୀ ରାମଚନ୍ଦ୍ର, ଅଯୋଧ୍ୟା ଦେଶ ନନ୍ଦନ, ତ୍ରେତୟା ଯୁଗରେ ଦଶରଥଙ୍କ ପୁତ୍ର । ଶ୍ରୀରାମ ଲକ୍ଷ୍ମଣ ଭରତ, ଶତ୍ରୁଘ୍ନ ଗୁଣଭ୍ରାତ, ତନୟଣୀ ଉଦରୁ ହୋଇଲେ ଜମୁତ । ଦଶରଥ ଅନନ୍ଦ ମନ । ବସିଷ୍ଠ ଦକ୍ଷେ କଲେ ବଦ୍ୟାପ୍ରଦାନ ।୧। ଦଶରଥ ନଉପାଇଁ, ଶଣ୍ଣ ମିତ୍ରଙ୍କୁ ଅଣାଇ, ପର୍ଶିଲେ ଗମଅଧ ଗୁରୁଦନନ୍ଦନ । ହୋଇଲେ ହୋ ମୁନତତି, ଚରଣେ ଶରଣ ମୋର, ଗୁରୁ କୁମରଙ୍କୁ କର ବଦ୍ୟା ପ୍ରଦାନ । ଦଶରଥ ରାଜା ଅଜ୍ଞାରେ । ବଦ୍ୟା ପଢ଼ାଇଲେ ମୁନ ଗୁରୁକୁମରେ । ୨ । ଏମନ୍ତେ ଦଦ୍ୟା ହେଉନ୍ତେ, ତହୁଁ କେତେଦନ ଅନ୍ତେ, ପଞ୍ଚମଙ୍କ ପଡ଼ଲା ଉଦମ ଦନ । ମକର ମାସରେ ପୁଣି, ଶୁକ୍ଳପକ୍ଷର ପଞ୍ଚମୀ, ସେ ଦନରେ ପୂଜା ଗୁରୁ କଲେ ବଧାନ । ଅଜ୍ଞାଦେଲେ ଶିଷ୍ୟଙ୍କୁ ଗଇ । ପୂଜାର ନମନ୍ତେ ଦ୍ରବ୍ୟ ଅଣ ରେ ଯାଇ ।୩। ଶ୍ରୀଫଳ ପଞ୍ଚପତ୍ର, ଧୂପ ଦୀପାଦ ଚନ୍ଦନ, ନାନାବର୍ଣ୍ଣ ପୁଷ୍ପମାନ ଅଣ ବହନ । ନଇବେଦ୍ୟର ଯେ ବଧି, ମିଷ୍ଟାନ୍ନ ସାମଗ୍ରୀ ଅଦ, ଗୁରୁଦକୁ ଯୋଗାଣ ତୁମ୍ଭେ ଅପ ବହନ । ଏହା ଶୁଣି ଗୁରୁ କୁମରେ । ପୂଜା ଦ୍ରବ୍ୟ ଅଣିବାକୁ ଗଲେ ସତ୍ୱରେ ।୪। ଗୁଧାବେ ପ୍ରବେଶ ଯାଇ, ନାନା ଅଭରଣ ହୋଇ, କର୍ଣ୍ଣରେ କୁଣ୍ଡଳ ଦୁହେ ଧାର କର୍ଯ୍ୟାଇ । ଶିରରେ ବାନ୍ଧିଲେ ଗଣ୍ଡ, କଣ୍ଠେ ଚନ୍ଦନ ଶୋଭା, ହିଡ଼ିଲେ ସ୍ୱବର୍ଣ୍ଣ

ବଜା ଶୋଭୁ ଦଶର । ନାନାମତେ ସଜ ହୋଇଲେ । ମୂଛାଯାଆ ଯେଣ
ଗୁରୁ ପାଖେ ମିଳିଲେ । ୫ । ପୂଜାର ବିଧି ବିଧାନ, ବଢ଼ାଇ ଆନନ୍ଦ
ମନ, ଜଳମଧରେ ଶ୍ରୀଫଳ ନେଇ ବୁଡ଼ାଇ । ଖୋଜନ୍ତେ ସବୁ କୁମରେ,
ଦକ୍ଷିଣ ଜଳମଧ୍ୟରେ, ଶ୍ରୀଫଳ ପାଇ ଶ୍ରୀରାମ ଆନନ୍ଦ ହୋଇ । ଭିକ୍ଷା
ମାଗିବାକୁ ଚଳିଲେ । ଦଶରଥରାଜା ପୁରେ ପ୍ରବେଶ ହେଲେ । ୬। ମଙ୍ଗଳ
ଶୋଳକମାନ, ପଢ଼ନ୍ତି ରାମ ଲକ୍ଷ୍ମଣ, ଭଟପୁଅଙ୍କୁ ଯେଜଣ ଆନନ୍ଦ
ହୋଇ । ରାମ ବୋଲନ୍ତି ପିଅର, ଯୁବତୀରେ ବିଦାକର, ଅନ୍ୟ ଘରଠାକୁ
ଆମ୍ଭେ ଯିବୁଁ ଚଳାଇ । ଯାହା ଦେବ ଦିଅ ଗୁରୁଙ୍କୁ । ସନ୍ତୋଷରେ ବିଦା
କର ଆମ୍ଭମାନଙ୍କୁ । ୭ । ଟଙ୍କାସୁନା ବସ୍ତ୍ରଦାନ, ଯାହାଦେବ ତାହା
ଅଣ, ଦେଖିବେ ସକଳ ଜନ ଦେବାର ଧନ । ଯାହା ଦେବ ଏହି-
ଠାରେ, ଲଜ୍ଜା ହେବ ଦେଶାନ୍ତରେ, ଅନେକ ଯିବାକୁ ଆମ୍ଭେ ନୋହୁଁ
ସାଜନ ତୁମ୍ଭେତ ମହତ ସୁଜାଣ । ପୁଟିଉରେ ବିଦାକର ଯିବା ବହନ ॥
ତୁମ୍ଭ ଦ୍ରବ୍ୟ ପାଇ ଆମ୍ଭେ, ଗୁରୁଙ୍କୁ ସେବିବୁଁ ସତେ, ପ୍ରସନ୍ନ ହୋଇବେ
ସୁରୁ ଅମ୍ଭଠାବର । ଅଠ ଦୁଃଖ ପଢ଼ିବାରେ ଅଇଲୁଁ ତୁମ୍ଭ ଘମୂରେ
ସୁଧାରେ ଅକୁଳ ଚିତ୍ତ ହୁଏ ଅସ୍ଥିର । ବିଦା ଦିଅ ଆମ୍ଭମାନଙ୍କୁ । ପୁଟିଉରେ
ଯିବୁଁ ଆମ୍ଭେ ଅନ୍ୟ ଠାବକୁ । ତୁମ୍ଭର ଯେଉଁ ପୋଦଉ, ବନ୍ଧୁ ମଣ୍ଡଳ
ଶ୍ୱଶୁର, ପିଉଶୀ ମଉସା ମାମୁ ଖୁଡ଼ୁ ଭ୍ରାତ ସର୍ବେ । ବରଷକେ ଆମ୍ଭେ ଥରେ,
ମାଘମାସ ପଞ୍ଚମୀରେ, ସବୁଦ୍ୱାରେ ମାଗୁଁ ଭିକ୍ଷା ଗୁରୁଙ୍କ ପାଇଁ । ଶୁଣି
ଏମନ୍ତ ବଚନ । ଟଙ୍କା ସୁନା ଦେଲେ ଦଶରଥ ରାଜନ । ୧୦ । ବିଦା
ହୋଇଣ ସକଳେ, ଆନନ୍ଦରେ ଭୋଳାହେଲେ, ଗୁରୁଙ୍କୁ ଯେଜଣ ତହୁଁ
ଚଳିଣ ଗଲେ । ବନ୍ଧୁ ବାନ୍ଧବଙ୍କ ଘରେ, ଭିକ୍ଷା ମାଗିବାକୁ ଗଲେ,
ଗୁରୁଙ୍କୁ ସନ୍ତୋଷ କରି ପାଦେ ନମିଲେ । ଶ୍ରୀରାମ ଶ୍ରୀପଦ୍ମ ଚରଣେ ।
ପଞ୍ଚମୀ ଖଟେକ ଦେବଜ୍ଞ ଶ୍ରୀକୃଷ୍ଣ ଭଣେ । ୧୧ ।

---

ସମାପ୍ତ ।

---

Printed by H. K. Das Chandrodaya Press, Cuttack

# ବିଜ୍ଞାପନ ।

ନିମ୍ନଲିଖିତ ପୁସ୍ତକମାନ ଉକ୍ତଲିଖିତ ଠିକଣାରେ ବିକ୍ରୟାର୍ଥେ ପ୍ରସ୍ତୁତ ଅଛି । ଅଧିକ ଖରିଦ ମହାଶୟଙ୍କେ ଅଧିକ କମିଶନ ଦିଅଯାଏ । ଚିଠିପତ୍ରାଦି ଦେଲେ ନାମ, ଧାମ, ପୋଷ୍ଟ ଅଫିସ, ଜିଲ୍ଲା ସ୍ପଷ୍ଟରୂପେ ଲେଖିବେ ।

| | |
|---|---|
| ଅଗ୍ନିପୁରାଣ | ଟ ୦ ।।୵ |
| ଅଙ୍ଗଦପଦ | ଟ ୦ ।୵ |
| ଅଙ୍ଗଦଶ୍ରବଣ ଦାୟିକା | ଟ ୦ ୵୬ |
| ଅଧ୍ୟାତ୍ମରାମାୟଣ (ଦୁର୍ଯ୍ୟମଣି) | ଟ ୧୫ |
| ଅପଚାକତା | ଟ ୦ ୵୬ |
| ଅମରକୋଷ | ଟ ୧ ୵ |
| ଅମରକୋଷ ଗୀତା | ଟ ୦ ।୵ |
| ଅଳଙ୍କାର ବୋଲି | ଟ ୦ / |
| ଅଶ୍ୱମେଧପର୍ବ | ଟ ୦ ।୵ |
| ଆଦର୍ଶନାରୀ ( ସ୍ତ୍ରୀଶିକ୍ଷା ) ୧ମ ଭାଗ | ଟ ୦ । |
| ଆରତତ୍ରାଣ ଚଉତିଶା | ଟ ୦ ୵୯ |
| ଆଳୀଜାତଶୋକ | ଟ ୦ ୵୬ |
| ଉଦ୍ଧବ କାହାଣୀ ୧ମ ଭାଗ | ଟ ୦ ୫ |
| ଉପେନ୍ଦ୍ର ଭଞ୍ଜ ସଙ୍ଗୀତ ୧ମ | ଟ ୦ /୬ |
| କପଟପାଶା | ଟ ୦ /୬ |
| କମଳାକାନ୍ତ ଚଉତିଶା | ଟ ୦ / |
| କଳାମାଣିକ | ଟ ୦ ୵୬ |
| କନ୍ତିଅଁଳାଓଁଆ କଥା | ଟ ୦ /୬ |
| କାର୍ତ୍ତିକମାହାତ୍ମ୍ୟ | ଟ ୦ ୫ |
| କାନ୍ତକୋଇଲି | ଟ ୦ |
| କାହାଣୀ | ଟ ୦ |
| କୃଷ୍ଣ କୋଇଲି | ଟ ୦ |
| କେଳାକେଳୁଣୀ ସୁଃ | ଟ ୦ / |
| କେଶବ କୋଇଲି | ଟ ୦ ୵ |
| କୋଇଲିମାଳିକା | ଟ ୦ / |
| କୌଶଲ୍ୟାଙ୍କ ରୋଦନ ଚଉତିଶା | ଟ ୦ |
| କୌଶଲ୍ୟା କୋଇଲି | ଟ ୦ |
| ଖଣ୍ଡୁରୁକୁଣ୍ଡେଶ୍ୱର କଥା | ଟ ୦ |
| ଗଜନିସ୍ତାରଣ | ଟ ୦ ୵ |
| ଗୀତଗୋବିନ୍ଦ | ଟ ୦ । |
| ଗୁଣସାଗର | ଟ ୦ |
| ଗୁପ୍ତଭାଗବତ | ଟ ୦ । |
| ଗୁପ୍ତଗୀତା | ଟ ୦ |
| ଗୋପସଙ୍ଗୀତକୁସୁମ ୧ମ | ଟ ୦ |
| ଗୋପାଳଚନ୍ଦ୍ରିକା | ଟ ୦ |
| ଗୋପୀଭାଷା | ଟ ୦ |
| ଗୋବିନ୍ଦଚନ୍ଦ୍ର | ଟ ୦ |
| ଗୋବିନ୍ଦଚନ୍ଦ୍ର ଟୀକା | ଟ ୦ |
| ଗୋବିନ୍ଦଚନ୍ଦ୍ର ଗୀତ | ଟ ୦ |

ଭିକ୍ଟୋରିଆ ପ୍ରେସ୍ ଓ ଭିକ୍ଟୋରିଆ ପୁସ୍ତକାଳୟ, ... | ଶ୍ରୀ ହରେକୃଷ୍ଣ ଦାସ, ପ୍ରୋପ୍ରାଇଟର